କବିସମ୍ରାଟ୍ ୬ ଉପେନ୍ଦ୍ର ଭଞ୍ଜଙ୍କ

# କଳାର ବୋଲି

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର

[ ନୂତନ ମୁଦ୍ରଣ ]



ପ୍ରାପ୍ତି ସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର୍

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ

ବାଲୁବଜାର, କଟକ-୨

ଫୋନ୍ ନଂ-୨୪୭୪୭

ମୂଲ୍ୟ—~~[illegible]~~ ମାତ୍ର

# ଭୂମିକା

ଦକ୍ଷିଣ ଓଡ଼ିଶାର ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଘୁମୁସର ରାଜ୍ୟ ପୂର୍ବେ ଭଞ୍ଜ ବଂଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ସେହି ରାଜବଂଶରେ ଉପେନ୍ଦ୍ର ଭଞ୍ଜ ଜନ୍ମ ଲାଭ କରିଥିଲେ । ଏହା ସପ୍ତଦଶ ଶତାବ୍ଦୀର ଘଟଣା ।

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କର ଅନେକ ଗୁଡ଼ିଏ ରାଣୀ ଥିଲେ । ପ୍ରତ୍ୟେକ ରାଣୀଙ୍କର ପୁତ୍ରକନ୍ୟା ଥିଲେ । ପ୍ରତ୍ୟେକ ରାଣୀ ନିଜ ପୁଅ କିପରି ରାଜାହେବ, ଏହି ଭାବନା କରୁଥିଲେ । ଇତି ମଧ୍ୟରେ ଜଣେ ରାଣୀ ପିଠା ଭିତରେ ବିଷ ମିଶାଇ ରାଜାଙ୍କୁ ଖାଇବାକୁ ଦେଇଥିଲେ । ରାଜା ସେ ପିଠା ଖାଇ ବିଷ ଜ୍ୱାଳାରେ ଛଟପଟ ହୋଇ ପ୍ରାଣତ୍ୟାଗ କଲେ । ରାଣୀ କେତେକ ଖଳ ଲୋକଙ୍କ ସାହାଯ୍ୟରେ ନିଜ ପୁଅକୁ ରାଜା କରିବାକୁ ବସିଲେ; ଉପେନ୍ଦ୍ର ଭଞ୍ଜଙ୍କ ପିତା ସିଂହାସନରେ ପ୍ରକୃତ ଅଧିକାରୀ ହେବାର ଥିଲେ ମଧ୍ୟ; ଜନକ୍ଷୟ ଓ ଅଶାନ୍ତି ଘଟିବାକୁ ସେ ପସନ୍ଦ ନ କରି ନିଜ ପୁଅ ଉପେନ୍ଦ୍ର ଭଞ୍ଜଙ୍କୁ ସାଙ୍ଗରେ ଆଣି ନୟାଗଡ଼ ଆସି ନୟାଗଡ଼ ରାଜାଙ୍କର ତତ୍ତ୍ୱାବଧାନରେ ରହିଲେ । ନୟାଗଡ଼ ରାଜା ଏମାନଙ୍କର ଚଳାଚଳ ହେବାର ସମସ୍ତ ପ୍ରକାର ସୁବିଧା କରିଦେଇ ଥିବାରୁ ନୟାଗଡ଼ରେ ଆନନ୍ଦରେ ରହିଲେ । ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ ବଡ଼ ଧାର୍ମିକ; ଶାନ୍ତଶିଷ୍ଟ ଓ କବି ଥିଲେ । ସେ 'ରଘୁନାଥ ବିଳାସ' କାବ୍ୟ ରଚନା କରିଥିଲେ ।

ଧନଞ୍ଜୟ ଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିଭା ଦେଖି ପିଲାଦିନରୁ ପାଣ୍ଡିତ୍ୟର ଉନ୍ନତି ସମ୍ପାଦନ କରିବାକୁ ଉପଦେଶ ଦେଇଥିଲେ ।

ଆତୁର ମଧ୍ୟ ସହୋଦର ବ୍ରହ୍ମାନନ୍ଦ ସାରସ୍ୱତ ରସ ସ୍ୱାଦନର ସୁଯୋଗ୍ୟ ଅଧିକାରୀ ହେବାକୁ ପ୍ରେରଣା ଦେଇଥିଲେ । ଉପେନ୍ଦ୍ର ଭଞ୍ଜ ପିତାମହଙ୍କର ଉପଦେଶ ମତେ 'ବୈଦେହୀଶ ବିଳାସ' କାବ୍ୟ ରଚନା କରିଥିଲେ । ପ୍ରଥମେ ଉପେନ୍ଦ୍ର ଭଞ୍ଜ ଭାବିଲେ ଏ ଦୁରୂହ କାର୍ଯ୍ୟ ସକାଶେ ଦୈବୀ-ସାହାଯ୍ୟ ଏକାନ୍ତ ଲୋଡ଼ା । ସେ ତ ନୟାଗଡର ସାହିତ୍ୟ ରସିକ ରାଜାଙ୍କ ଦୟାରୁ ନୟାଗଡ଼ରେ ଥିଲେ । ଉପେନ୍ଦ୍ର ଦୈବୀସାହାଯ୍ୟ ଆଶାରେ ନୟାଗଡ଼ ନିକଟବର୍ତ୍ତୀ ଓଡ଼ଗାଁର ଶ୍ରୀରଘୁନାଥ ଜୀଉଙ୍କ ପୀଠରେ ରାମତାରକ ମନ୍ତ୍ର ଜପ କରିବାକୁ ଲାଗିଲେ । କଠୋର ନୈଷ୍ଠିକ ଭାବରେ ଏକାଗ୍ରତା ରଖି ଜପ କରିବାରୁ ଶ୍ରୀରଘୁନାଥଙ୍କ ଦୟାରେ ତାଙ୍କର କବି ପ୍ରତିଭା ଉତ୍ତରୋତ୍ତର ବଢ଼ିବାରେ ଲାଗିଲା । ତହୁଁ ସେ 'ବୈଦେହୀଶ ବିଳାସ' 'ଲାବଣ୍ୟବତୀ' 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ପ୍ରଭୃତି ଅନେକ କାବ୍ୟ; ଚୌପଦୀ, ସଙ୍ଗୀତ, ଛାନ୍ଦମାନ ରଚନା କରିଥିଲେ । ତାହାର ଭାଷା ମଧୁର ସୁଖକର, ଆମୋଦଦାୟକ ଓ ଭକ୍ତିପୂର୍ଣ୍ଣ ଥିଲା । ମାତ୍ର ତାଙ୍କର ରଚନା ମଧ୍ୟରେ ଆଦିରସର ମାତ୍ରା ଅଧିକ ଥିବାର ପରିଲକ୍ଷିତ ହୁଏ ।

ତାହାଙ୍କ ରଚିତ ଗ୍ରନ୍ଥମାନ ଏ ପର୍ଯ୍ୟନ୍ତ ପୂର୍ଣ୍ଣଭାବେ ମିଳି ନ ଥିବାରୁ ଲୋକଲୋଚନ ଅନ୍ତରାଳରେ ଅଛି । ଯାହା ସବୁ ମିଳିଛି; ସେଥିମଧ୍ୟରୁ ଅଧିକାଂଶ ଛପା ହୋଇ ଛାନ୍ଦ ପ୍ରେମୀମାନଙ୍କର ଆଦରର ବସ୍ତୁ ହୋଇଛି । ସେହି ସବୁ ରଚନା ମଧ୍ୟରୁ ଏହି 'ବିଜାର ବୋଲି' ନାୟକ-ନାୟିକାମାନଙ୍କର ରହସ୍ୟପୂର୍ଣ୍ଣ ପ୍ରଶ୍ନୋତ୍ତରମାନ ପାଠକମାନଙ୍କ ମନରେ ବିଶେଷ ଆନନ୍ଦ ଜନ୍ମାଇ ଥାଏ । ଏହି କବିଙ୍କର ପଦ ସଂଯୋଗ ଉପମା; ଉଦାହରଣ

ଦେଖିଲେ ଜଣାଯାଏ, ଏହି କବି ସମ୍ରାଟ ଗଣିତ, ଜ୍ୟୋତିଷ, କବିରାଜ ଆଦି ବିଦ୍ୟା ମଧ୍ୟ ଜାଣିଥିଲେ । ଏହାଙ୍କ ରଚିତ କାବ୍ୟ-ମାନଙ୍କରୁ ଏସବୁ ସ୍ପଷ୍ଟ ପ୍ରମାଣ ମିଳେ ।

ଆହୁରି ମଧ୍ୟ ଶବ୍ଦ ପ୍ରୟୋଗ ଶୈଳୀ ଏପରି ଚମତ୍କାର ଯେ, ଗୋଟିଏ ଗୋଟିଏ ପଦର ଦୁଇ ପ୍ରକାର, ତିନି ପ୍ରକାର ଅର୍ଥ ହୋଇ ପାରୁଛି । ଲେଖକ ଆଳି ରାଜା (ବ୍ରଜସୁନ୍ଦର ଦେବଙ୍କ) ସହିତ ଏହି ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥ ସମ୍ବନ୍ଧେ ଆଲୋଚନା କରିବାରୁ ସେ ମହାଶୟ ପ୍ରତ୍ୟେକ ପଦର ଆଧ୍ୟାତ୍ମିକ ଅର୍ଥ ବୁଝାଇଥିଲେ, ମାତ୍ର ତାହା ଲିପିବଦ୍ଧ କରି ନଥିବାରୁ ଆକାଶ କୁସୁମ ଅବସ୍ଥାକୁ ଯାଇଅଛି ।



# ବଜାର ବୋଲି

କମଳା ପସରା- ବାଳୀକ କେ ବୋଲେ
ତୋ କମଳା ଯୋଡ଼ କେତେ
ଦେଖାଅ ଦେଖିବା ମୂଲ୍ୟ ହିଁ କରିବା
କହିଦଅ ନେବୁ କେତେ ? । ୧ ।

ଗୋଟିଏ ବଜାରକୁ ଜଣେ ଯୁବାପୁରୁଷ ଯାଇ ଦେଖିଲା, ସେଠାରେ ପ୍ରତ୍ୟେକ ବ୍ୟବସାୟ ଯୁବତୀ ସ୍ତ୍ରୀମାନେ କରୁଛନ୍ତି । ତହୁଁ ସେ ପ୍ରତ୍ୟେକ ଦୋକାନକୁ ଯାଇ; ସେ ସ୍ତ୍ରୀମାନଙ୍କ ସଙ୍ଗେ ଯେପରି ଭାବେ କଥାବାର୍ତ୍ତା କଲା, ସେହି ବିଷୟ ଏଥିରେ ଉପେନ୍ଦ୍ର ଭଞ୍ଜ ଦ୍ୱିବିଧ ଅର୍ଥଯୁକ୍ତ ପଦରେ ଲେଖିଛନ୍ତି ।

ଅର୍ଥ—ସେ ପୁରୁଷ ଜଣେ କମଳା ବିକ୍ରୟ କରୁଥିବା ଯୁବତୀ ପାଖରେ ପହଞ୍ଚି କହିଲା—ତୁମେ ଏ ଯେଉଁ କମଳା ପସରା ଆଣିଛ, ସେଥିରୁ ଆଗେ ଯୋଡ଼ିଏ କମଳା ମୋ ହାତକୁ ଦିଅ । ମୁଁ ସେ କମଳା ଦେଖି, ତାହା ଭଲ କି ମନ୍ଦ ଦେଖିଲେ ନେବି । ଆହୁରି ମଧ୍ୟ ଏ ଦୁଇଟି କମଳାର ଉଚିତ ମୂଲ୍ୟ କେତେ ନେବ କହିଦିଅ ।

ଅନ୍ୟାର୍ଥ—ସେ ପୁରୁଷ ସେହି ଯୁବତୀକୁ କହିଲା—ତୁମ୍ଭ ବକ୍ଷର ଲୁଗାଫୁଟି ଭିତରେ ଉଚ୍ଚ ଉଚ୍ଚ କମଳା ପରି ଯେଉଁ କୁଚ ଯୁଗଳ ଦେଖା ଯାଉଅଛି, ତାହା ମୋ ହାତକୁ ଦେଲେ ଟିକିଏ କି ପାଚିଲା ମୁଁ ପରୀକ୍ଷା କରି ଦେଖିବି । ଏଥି ସକାଶେ ତୁମ୍ଭେ ସେ ଦୁଇଟିର ମୂଲ୍ୟ କେତେ ନେବ, ମଧ୍ୟ ଖୋଲିକରି କହ ।

ସେ ବୋଲେ କମଳା ଝନା ମୋ କମଳା
ଅତି ଯତ୍ନେ ବଢ଼ି ଅଛି

ଅମଳା କମଳା ସଞ୍ଜ ମେଳା ଦେଖ
ବାସ ଫୁଟି ପ୍ରକାଶୁଛି । ୨ ।

ଅର୍ଥ – ଯୁବତୀ କହିଲା—ମୋ ଟୋକେଇରେ ଯେଉଁ କମଳା ଅଛି, ତାହା ଟାଟକା । ସେଥିରେ ପାଣି କମ୍ବା ପବନ ବାଜି ତାହା ପଚିଯାଇ ନାହିଁ କି ଖରାପ ହୋଇ ନାହିଁ । ପାଣିର ମଳା ବା ଉଷୁମ ପବନ ଯୋଗେ ଯେପରି ପଦାର୍ଥକୁ ନଷ୍ଟ କରେ, ଏଥିରେ ତାହା ଲଗି ନାହିଁ । ଏହି କମଳାକୁ ମୁଁ ଅତି ଯତ୍ନରେ ମୋ ନିଜ ଗଛରେ ବଢ଼ାଇଅଛି । କମଳା ( ଟାଟକା ) ରହିଥିବାର ବାସ ବାସନା ଚହଟୁଛି । ଏପରି କମଳା କେଉଁଠି ପାଇବ ନାହିଁ ।

ଅନ୍ୟାର୍ଥ—ସେ ଯୁବତୀ ଏ ରସିକ ଲମ୍ପଟ ପୁରୁଷର କଥା ବୁଝି ପାରି କହିଲା—ଆଜଯାଏ ମୋର ବକ୍ଷସ୍ଥ କମଳ ତୁଲ୍ୟ କୁଚଯୁଗଳ କୌଣସି ପୁରୁଷର ହସ୍ତ ଦ୍ୱାରା ଧରାଯାଇ ମଳା ମର୍ଦ୍ଦନ ହୋଇ ନାହିଁ । ତେଣୁ ସେ କମଳ ରୂପୀ କୁଚ ସ୍ୱାଭାବିକ ଅବସ୍ଥାରେ ରହିଅଛି । ସେହି କୁଚରୂପକ କମଳା ମୋ ବକ୍ଷରେ ରହିଥିବାରୁ, ମୁଁ ଯେଉଁ ବସ୍ତ୍ର ପିନ୍ଧିଛି, ସେ ବସ୍ତ୍ରକୁ ଠେଲିଦେଇ ଉଲଘବରେ ଉପରକୁ ଫୁଟି ବାହାରୁଥିବାରୁ ତୁମ୍ଭ ଭଳି ପୁରୁଷ ଦେଖିଲେ ଛାଡ଼ି-ପାରିବେ ନାହିଁ ।

ନିରସ ହୋଇବ ବୋଲି ମୋ କମଳା
ନୀରସ ମୂଲ୍ୟ ନୋହିବ
କରକଣ ହେଇ ନାହିଁ ମୋ କମଳା
କରକଣ ମୂଲ୍ୟ ହେବ । ୩ ।

ଅର୍ଥ– ମୋର ଏହି କମଳା ପୂର୍ଣ୍ଣଭାବରେ ପାଚିଯାଇ, ଧୀରେ ଧୀରେ ତା ଭିତରେ ଯେଉଁ ରସ ଅଛି, ସେ ପାଣିଆ ନ ହୋଇ ଘନ ହୋଇଥିବାରୁ, ଅତ୍ୟନ୍ତ ମଧୁର ହେବ । ତେଣୁ କରି ଏହାର ମୂଲ୍ୟ ମଧୁର ଗୁଣ ହେତୁ କମ୍ ନ ହୋଇ ବେଶି ହେବ, କାରଣ, ଜିନିଷର ମୂଲ୍ୟ ସବୁଠାରେ ମିଠା ଉପରେ ଠିକ୍ ହୁଏ । ଆହୁରି ମଧ୍ୟ ମୋର ଏହି କମଳା ଖରାରେ ଶୁଖିଯାଇ ଟାଣୁଆ ହୋଇ ନାହିଁ । କୌଣସି ନା କୌଣସି ଗ୍ରାହକ ଏହାକୁ ହାତରେ ଧରି ଚପାଚପି କରି ନୋଚଟ କରି ନାହିଁ । ତେଣୁ ଏ କମଳା ସ୍ୱାଭାବିକ ଅବସ୍ଥାରେ ଥିବାରୁ, ଏହାର ମୂଲ୍ୟ ନିଶ୍ଚୟ ଟାଣୁଆ ବା ବେଶି ହେବ ।

ଅନ୍ୟାର୍ଥ– ହେ ପୁରୁଷ, ମୋର ଏହି କୁଚ କମଳା ରସଶୂନ୍ୟ ହୋଇନାହିଁ । ମୁଁ ଯେବେ କୌଣସି ପୁରୁଷ ସଂସର୍ଗ କରି ଗର୍ଭଧାରିଣୀ ହୋଇ ପିଲା ଜନ୍ମ କରିଥାନ୍ତି, ତାହା ହେଲେ ଐଶ୍ୱରିକ ନିୟମରେ ମୋ ସ୍ତନରୁ ରସ ଦୁଧ ବାହାର ହୋଇ ସେ ରସ ପିଲା ଖାଇଥାନ୍ତା, ତେବେ ମୋ ସ୍ତନ ଶିଥିଳ ହୋଇଥାନ୍ତା, ମାତ୍ର ମୁଁ ତ ତାହା କରି ନାହିଁ । ଆଜି ପର୍ଯ୍ୟନ୍ତ କୌଣସି ପୁରୁଷର ହାତ ମୋ ସ୍ତନକୁ ଛୁଇଁ ନ ଥିବାରୁ ଏହା ବେଶି ମୂଲ୍ୟ ହେବ ।

ଏବେ ନଅ ମୂଲ୍ୟ                    କହୁ ଦେଉଅଛୁ
ଏ ବେଳ ଅମୂଲ୍ୟ ହେବ

ଚନ୍ଦ୍ର କରେ ଥିଲେ                    ନୋହିବ କହୁଛୁ
ଚନ୍ଦ୍ର କରେ ଥିଲେ ହେବ । ୪ ।

ଅର୍ଥ—ହେ ପୁରୁଷ ! ଏବେ ମୋର ଏ ଯୋଡ଼ କମଳାର ମୂଲ୍ୟ କହୁ ଦେଉଅଛୁ । ତାହା ଏବେ ବ ଅମୂଲ୍ୟ ହେବ, ଅର୍ଥାତ୍ ମୂଲ ଦେଇ ପାରିବ କ ନାହିଁ ମୋର ସନ୍ଦେହ । ଯେବେ ପାରିବ ତେବେ କଣିନେବ । ଚନ୍ଦ୍ର (ଟଙ୍କ) ଯେବେ ହାତରେ ଅଛୁ (କରେ - ହାତରେ) ତେବେ ମୂଲ୍ୟ କର, ନ ହେଲେ ଅକାରଣରେ ମୂଲ୍ୟ କରି ଲାଭ କ'ଣ ? (ଚନ୍ଦ୍ର କରେ) ଟଙ୍କା ବା ସୁନା, ହୀରାଦି ରତ୍ନ ବା ଗହଣା ଯାହା ଦେଇ ଏ କମଳା ନେଇ ପାରିବ ।

ଅନ୍ୟାର୍ଥ—ହେ ପୁରୁଷ ! ତୁମ୍ଭ କଥାରୁ ଜଣାଯାଉଛି, ତୁମ୍ଭେ ଜଣେ ଶାଠପୁରୁଷ । ଯାହାହେଉ, ତୁମ୍ଭେ ମୋ କୁଚ କମଳା ସହ ମୋତେ ଯେବେ ଭୋଗ କରିବାର ଇଚ୍ଛା ଥାଏ, ତେବେ ମୁଁ ଏ କମଳା ଯୋଡ଼କ ତୁମ୍ଭ ହାତରେ ଧରିବା ସକାଶେ ଦେଉଅଛି । ମାତ୍ର ଏହା ହେଲେ ଅଧିକ ମୂଲ୍ୟ ତୁମ୍ଭଙ୍କୁ ଦେବାକୁ ହେବ । ଯେବେ ଚନ୍ଦ୍ରକଳା ତୁମର ଆଜ ମୁଣ୍ଡରେ (କ'ରେ) ଥିବ, ତେବେ ଏ କମଳା ଧରି ତୁମ୍ଭେ ପ୍ରୀତି ଭଲ ସ୍ତବରେ କରି ପାରିବ ନାହିଁ । ମାତ୍ର ଯେବେ ବୃଦ୍ଧମା ଗତ ହୋଇଥିବ ତେବେ ଏ ଯୋଡ଼ କମଳା ରୂପକ କୁଚ ମର୍ଦ୍ଦନ କରି ମୋ ସହିତ କାମକ୍ରୀଡ଼ା କରି

ପାଠକ । ହେଲେ,ଆଗେ ଟଙ୍କା, ମୋହର, ସୁନା ଥିବାବେଳେ ଅଦ୍ଭୁତ ବଜାର ବସିଥିଲା । ତୁମ୍ଭେ ଏହାର ପ୍ରଥମ ଗ୍ରାହକ ।

ତାମ୍ବୁଳ ବନଛା ମନ୍ଦହାସ ଦେଖି
କେ କହେ ମୃଦୁ ବଚନ
ପତ୍ର ଉପର ପାନ ଶୁଖୁଅଛି
ଦିଅ ତ ଅଧର ପାନ । ୫ ।

ଅର୍ଥ—ସେହି ରସିକ ପୁରୁଷ ଏଠାରୁ ଯାଇ ପାନବଣୀ ପାଖରେ ପହଞ୍ଚି ତାକୁ କହିଲା - ତୁମ୍ଭ ଝୋଲେଇର ଉପର ପାନ ତ ଶୁଖିଲା ଦିଶୁଛି, କାହିଁକି ଶୁଖାଇ ଦେଉଛ ! ତୁମ୍ଭେ ପାନ ଝୋଲେଇ ଅଧରୁ ପାନ ବାହାର କରି ମୋତେ ଦେଲ ।

ଅନ୍ୟାର୍ଥ—ହେ ପାନବଣି ! ତୋର ଶରୀର ପାନ ଝୋଲେଇ ପରି ଅଟେ । ମୁଁ ମନେ କରୁଛି,ତାକୁ ପାନ (ଭୋଗ କରିବାକୁ) କରିବାକୁ କେତେକ ଇଚ୍ଛା କରନ୍ତେ; ତାହା ସୁଖକର ହେଲେ ମଧ୍ୟ ତୋ ଅଧର ବା ଓଷ୍ଠରେ ଯେ ଅମୃତ ଅଛି, ତାହା ମୋତେ ପାନ କରିବାକୁ ବା ଚୁମ୍ବନ ଦେବାକୁ ଦିଅ ।

ନବ ରମଣୀ ଛଇଳ ମଣି ମଣି
କହେ ଭଙ୍ଗୀ ଇଙ୍ଗିତରେ
ଅଛୁ ନବବଧୂଆ କାଢ଼ିଦେବ ପୁଷ୍ଟ
ଜାତିଫଳ ସହିତରେ । ୬ ।

ଅର୍ଥ—ସେହି ପାନଗୁଣୀ ନୂଆ ହୋଇ ଯୁବତୀ ହୋଇଛି,ଅର୍ଥାତ୍ ବଡ଼ ହୋଇଛି, ପୁଣି ସେଥିରେ ସେ ଛଟକଣା ଅଟେ । ତେଣୁ ସେ ଦେହ ମୁଣ୍ଡ ହଲାଇ, ଅବଲମ୍ବ କରି ପରି କହିଲା— ତୁମ୍ଭଙ୍କୁ ଭଲ ପାନ ଜୋଡ଼ା । ମୋ ପାଖରେ ବଡ଼ିଆ ପାନ ଖିଲି ଅଛି । ସେଥିରେ ମୁଁ ଜାଇଫଳ ଓ ଲବଙ୍ଗ ଦେଇ ତୁମ୍ଭଙ୍କୁ ଦେବି ।

ଅନ୍ୟାର୍ଥ—ସେ ପାନଗୁଣୀ ଏ ଖାଟ ପୁରୁଷର ଢଙ୍ଗ ଦେଖି, ସ୍ତ୍ରୀ ସୁଲଭ ଅଙ୍ଗଭଙ୍ଗୀ ଦେଖାଇ କହିଲା-ହେ ରସିକ ପୁରୁଷ ! ମୋର ପଲଣ ହୃଷ୍ଟ ଦେହର ଅଧରେ (ନବଡ଼ିଆ) ଲୁଗା ଢଙ୍କା ଯାଇଅଛି । ଯେବେ ତୁମ୍ଭେ ଇଚ୍ଛାକର, ତେବେ ସେ ଲୁଗାକୁ ଫିଟାଇ ଦେଖ ସେଠାରେ ଯେଉଁ ଜନନେନ୍ଦ୍ରିୟ ଅଛି, ସେଥିରୁ ସୃଷ୍ଟିବସ୍ତୁ ହେବାକୁ ହୁଏ । ତାହାର ଉନ୍ମାଦନ ଯେଉଁଠାରୁ ଜାତ ହୁଏ, ଅର୍ଥାତ୍ କୁଚରୁ—ମୁଁ ତାହା ଦେବାକୁ ରାଜି ଅଛି ।

ସେ ବୋଲଇ ତୋର ପାନ ପତରରେ
କି ମିଶିଲେ ହେବ ରଙ୍ଗ
ସେ ବୋଲଇ ମୋର ବଡ଼ ଅନୁରାଗ
ବାଳତରୁଣର ସଙ୍ଗ । ୭ ।

ଅର୍ଥ—ଏ କଥା ଶୁଣି ସେ ପୁରୁଷ କହିଲା—ତୋର ପାନ ପତରରେ କ'ଣ ମିଶାଇଲେ ଲାଲ ହେବ, ଅର୍ଥାତ୍ ଖାଇଲେ ପାଟି ନାଲିଆ ହେବ । ଏ କଥା ଶୁଣି ପାନଗୁଣୀ କହିଲା— (ବାଳ ତରୁଣ) ଖଇର ପକାଇଲେ ନାଲିରଙ୍ଗ ଦେଖାଯାଏ । ସେଥିରେ ମୋର ଭାରି ଶ୍ରଦ୍ଧା ।

ଅନ୍ୟାର୍ଥ—ପୁରୁଷ କହିଲା—ତୋର ଯେ ଘାନ ପଣ ଭୂଲି ଜନମେଜୟ ପୁରେ କ'ଣ ମିଶ ଇଲେ ରଙ୍ଗ ମା ଝଣେ । ଯୁବତୀ ଉତ୍ତର ଦେଲା—ଖଇରରୂପୀ ଚରଣମାନଙ୍କ ସଯୋଗରେ ମୋର ଅଧିକ ଶ୍ରଦ୍ଧା ହୁଏ ।

ମାଳାକାର ବାଳୀ ପାଶରେ କେ ମିଳ
କହଇ ହରଷ ଚିତ୍ତେ
ତୋହର କୁସୁମ ପ୍ରକାଶ ହୋଇଲେ
ଆଗହୁଁ କୁ ଦେବୁ ମୋତେ ।୮।

ଅର୍ଥ—ପୁଣି ସେ ପୁରୁଷ ମାଲୁଣୀ ପାଖକୁ ଯାଇ ଖୁସିରେ କହିଲା- ତୋର ବଗିଚ୍ଛରେ ଫୁଲ ପ୍ରଥମେ ଫୁଟିଲେ ତାକୁ କୁ ମୋତେ ଦେବୁ ।

ଅନ୍ୟାର୍ଥ—ସେ ପୁରୁଷ ମାଲୁଣୀକୁ କହିଲା—କୁ ପ୍ରଥମେ ପୁଷ୍ପବତୀ ହେଲେ ମୋତେ ସମ୍ବାଦ ଦେବୁ । ମୁଁ ଯେପରି ପ୍ରଥମେ ସମ୍ଭୋଗ କରିବ ।

ସେ ବୋଲେ ନାଗର ହବସ ହୋଇଛୁ
ସବକୁ ହେବ ଉଲ୍ଲାସ
ଭ୍ରମର ବହାର ନ କରୁ ଆସିବ
କୁସୁମରେ ଥିବ ବାସ । ୯ ।

ଅର୍ଥ—ପୁରୁଷର କଥା ଶୁଣି ମାଲୁଣୀ କହିଲା—ହେ ନାଗର, ବର୍ତ୍ତମାନ ଦିନ । ମୋର ବଗିଚ୍ଛରେ ଯେ ସବୁ ଫୁଲ ଲତା ଅଛୁ, ସେ ସବୁ ସନ୍ତରେ ଖୁସିରେ ଫୁଟେ । ସନ୍ଧ୍ୟା ଗଡ଼ିଗଲା ପରେ ଭଅଁରମାନେ ମଧୁ ଆଶାରେ ଆସନ୍ତି । ତୁମ୍ଭେ ଯେବେ ତା ଆଗରୁ ଆସିପାରିବ, ତେବେ ତଟକା ଫୁଟିଥିବା ଫୁଲର ବାସନା ପାଇ ପାରିବ ।

ଅନ୍ୟାର୍ଥ – ସେ ମାଲୁଣୀ ବଡ଼ ରସିକମା । ତେଣୁ ସେ ରହସ୍ୟରେ କହିଲ – ହେ ନାଗର ତୁମେ ଜାଣ ଦିନରେ ସ୍ତ୍ରୀସମ୍ଭୋଗ ନିଷିଦ୍ଧ । ତେଣୁ ରାତ ହେଲେ ତୁମେ ଯେବେ ପ୍ରଥମରେ ମୋ ପାଖକୁ ଆସିବ, ତେବେ ମୁଁ ତୁମ୍ଭଙ୍କୁ କାମକ୍ରୀଡ଼ାରେ ସନ୍ତୋଷ କରି ପାରିବି । ସାବଧାନ, କେହି ନଆସିବା ପୂର୍ବରୁ ତୁମକୁ ଆସିବାକୁ ହେବ; କାରଣ ଅଗ୍ନିରେ ପତଙ୍ଗ ପଡ଼ିଲା ପରି ପୁରୁଷର ସ୍ପର୍ଶରେ ନାରୀର ପୃଷ୍ଠ ସ୍ତନ ତ୍ରୁଟିତ ହୋଇ ରୋମାଞ୍ଚ ହୁଏ ।

କୁସଳ ବଧୂକୁ କେ ବୋଲଇ ତନୁ
କ ହୁଏ ସ୍ମର ତାପରେ
ମୂଲ୍ୟ ଦେଇ ପାଣି ପୂରାଇ ଦଅଇ
ତୁମ୍ଭେ ଥରେ ଛରଜରେ । ୧୦ ।

ଅର୍ଥ – ସେହି ରସିକ ପୁରୁଷ କୁସଳବଧୂ ( କୁମ୍ଭାରୁଣୀ ) କୁ କହିଲା – ମୋର (ତନୁ) ଦେହ (ସ୍ମର ତାପରେ) ସୂର୍ଯ୍ୟଙ୍କ ପ୍ରଖର କିରଣ ତେଜରେ କ'ଣ ହୋଇ ଯାଉଛି, ଅର୍ଥାତ୍ ଅଧିକ ଖରା ହେତୁ ମୋର ମନ ଉଚ୍ଚାଟ ଲାଗୁଛି । ତୁମ୍ଭର ଏ ଯେଉଁ ଘୁଣ୍ଟ ପାଖରେ (କୁମ୍ଭ) ମାଠିଆ ରଖିଛ, ତାହା ମୋତେ ଦେଲେ, ମୁଁ ସେଥିରେ ପାଣି ପୂରାଇ ପଂଚ। କଣା କ ଭଲ ଦେଖିଲେ ତୁମ୍ଭଙ୍କୁ ସେ ମାଠିଆର ମୂଲ୍ୟ ଦେବି ।

ଅନ୍ୟାର୍ଥ – ସେ ପୁରୁଷ କୁମ୍ଭାରୁଣୀ ପାଖରେପହଞ୍ଚି ତାକୁ କହିଲା, (ସ୍ମରତାପରେ)କାମପୀଡ଼ାରେ ମୋ ମନ ଓ ଦେହ ଥୟହେଉ ନାହିଁ । ଏହି କାମ ଦାଉର ରକ୍ଷା ପାଇବାକୁ ତୁମ୍ଭ ଘୁଣ୍ଟରେ ମାଠିଆରୂପକ ଯେଉଁ କୁଚ ଅଛି, ତାକୁ ମୋ

ହାତରେ ଧରିବାକୁ ଦେଲେ, ତା ସକାଶେ ତୁମ୍ଭେ ଯାହା
ମାଗିବ, ଯେତେ ଧନରତ୍ନ ମାଗିବ, ମୁଁ ତାହା ଦେବ ।

ସେ ବୋଲଇ ଏ ତ ବଡ଼ ଖଣ୍ଡପଣ
ମୂଲ୍ୟ କେତେ କର ଏବେ
ତଙ୍କିକ ନ ଡର ଜୀବନ ରହିବ
ନିଅ ଘଟ ଅବିଳମ୍ବେ । ୧୧ ।

ଅର୍ଥ—ଏହା ଶୁଣି କୁମ୍ଭାରୁଣୀ କହିଲା—ଯେଉଁ ଖଣ୍ଡ ବା ପାତ୍ର, ଏ ଖୁବ୍ ବଡ଼ । ତୁମ୍ଭେ କେତେ ମୂଲ୍ୟମୂଲ କରୁଛ ? ପଇସାକୁ ଡର ନାହିଁ । ଆଗେ ପ୍ରାଣକୁ ଦେଖ । ଏ ପାତ୍ରରେ ଜଳ ନେଲେ ତୁମ୍ଭର ଜୀବନ ଶାନ୍ତ ହେବ । ବିଳମ୍ବ ନ କର ଧନ ଦେଇ ଶୀଘ୍ର କିଣିନିଅ ।

ଅନ୍ୟାର୍ଥ—ସେ କୁମ୍ଭାରୁଣୀ ଏକ ରସିକା । ସେ ଏ ଗାଉଁଲି ପୁରୁଷର ସ୍ବଭାବ ଦେଖି ତାର କାମଶକ୍ତି ଜାତ ହେବାରୁ, ସେ କହିଲା ହେ ନାଗର ! ତୁମେ କ'ଣ ଠକ ହେବ କି ? ମୋତେ ସେହିପରି ଜଣାଯାଉଅଛି । ଯେବେ ତୁମ୍ଭର ପ୍ରବଳ ଇଚ୍ଛା ଅଛି; ତେବେ ଧନରତ୍ନକୁ ଡର ନାହିଁ । ମୁଁ କହୁଅଛି,ଆଗେ ମୋର ବକ୍ଷ-କଳସ ବା କୁଚକୁ ହସ୍ତରେ ମର୍ଦ୍ଦନକରି ମୋର କାମପୀଡ଼ାକୁ ଦୂର କର । ବିଳମ୍ବ କଲେ ଏ ଦେହ ସମ୍ଭାଳ ହେବ ନାହିଁ । ତେଣିକି ତୁମ୍ଭେ ଓ ମୁଁ ଦୁହେଁ ପରିତୃପ୍ତ ହେଲେ ମୂଲ୍ୟ କଥା ରହିବ ନାହିଁ ।

କଂସାରି ବାମାକୁ କେ ବୋଲଇ ଦେଖା
କେମନ୍ତ ପାତ୍ର ହୋଇଛି
ଆଗ କର ମୂଲ୍ୟ ସମ୍ଭବ କରିବା
ଉତ୍ତମ ହନ ଯାଉଛି । ୧୨ ।

ଅର୍ଥ—ସେ ପୁରୁଷ କୁମ୍ଭରୁଣୀ ପାଖରୁ ଯାଇ କଂସାରୁଣୀ ପାଖରେ ପହଞ୍ଚି ତାକୁ କହିଲା– ତୁମ୍ଭର (ମାଳ) କଂସା ବାସନ ଇତ୍ୟାଦି କପରି ହୋଇଛି ମୋତେ ଦେଖାଅ। ଆଜି କାଲିଦିନ ଥିବାରୁ ମୁଁ କିଣିବା ସକାଶେ ଆସିଥିଲି । ଦିନ ତ ସରିବା ଉପରେ ହେଲାଣି । ତେଣୁ ପ୍ରଥମେ ବାସନ କୁସନର ଦାମ୍ ଠିକ୍ କରିଦେବା ଭଲ ହେବ ।

ଅନ୍ୟାର୍ଥ—ସେ ପୁରୁଷ ଭଂସରୁଣୀକି କହିଲା– ତୋର (ସଉଦା) ମୋତେ ଦେଖାଅ । ମୋର ପ୍ରାଣର ଉପଯୁକ୍ତ ବେଳ (ଯୁବା ସମୟ ଉଦ୍‌ଗମ) କମିଯାଉଛି । ତେଣୁ ତୁମ୍ଭର କାମ ମନ୍ଦିରକୁ ଦେଲେ, ମୁଁ ତ ତା ଭୋଗ କରିବି । ତାହା ପରେ ତୁମ୍ଭେ ଯାହା ଚାହିଁବ ସେ ମୂଲ୍ୟ ଦେବି; କିନ୍ତୁ ମୂଲ୍ୟ ଆଗ ସ୍ଥିର କରିଦେଲେ ଭଲ ହେବ ।

ସେ ବୋଲଇ ଏଇ ପାତ୍ର କମା ନେବ
କୁମ୍ଭ ହିଁ ମଜାଇ ଦିଅ
ଆଗକରି ମୂଲ୍ୟ ଦିଅ ହୋ ନାଗର
ଯେ ବାସନ ପାଲଟାଅ । ୧୩ ।

ଅର୍ଥ—ସେହି ପୁରୁଷକୁ କଂସାଶଙ୍ଖର ସ୍ତ୍ରୀ ବା କଂସାରୁଣୀ କହିଲା –ତୁମ୍ଭେ ଖାଲି ବାସନ ନେବ କାହିଁକି, ତୁମ୍ଭ ପାଖରେ ଥିବା (କୁମ୍ଭ) ମାଠିଆକୁ ଏଠାରେ ମଜାଇ କରି ଦିଅ ଏବଂ ଯେଉଁ ବାସନଟି ଫେରାଇ ଦେବାକୁ କହୁଛ, ଆଗକରି ତା'ର ମୂଲ୍ୟ ମୋତେ ଦିଅ ।

ଅନ୍ୟାର୍ଥ –ସେହି ନାଗରୀ ପୁରୁଷକୁ ନାଗର କଂସାରୁଣୀ କହିଲା, ତୁମ୍ଭେ ଖାଲି ମୋର କାମକେଳି ସ୍ଥାନଟିକୁ ନେବ କାହିଁକି,

ତା ସଙ୍ଗରେ ମୋର ମାଠିଆରୂପୀ କୁଚକୁ ଦେଇ ମର୍ଦ୍ଦନ କର, ମୋର ପିନ୍ଧଲା ଲୁଗାକୁ ଖସାଇ ଦେଇ, ତୁମ୍ଭର ମନ ତୃପ୍ତି ପରେ ମୋତେ ଉପଯୁକ୍ତ ଭାବରେ ମୂଲ୍ୟ (ଧନଦ୍ରବ୍ୟ) ଦେଇ ମୋର ପିନ୍ଧିବା (ବାସ) ଲୁଗାକୁ ପିନ୍ଧାଇ ଦିଅ । ତେବେ ତୁମର ରସିକପଣ ଜଣାଯିବ ।

ପାଟବଣୀ ପାଶେ କେ ବୋଲଇ ତୋର
ଏ ବଉଳ ମୂଲ୍ୟ କେତେ
ସେ ବୋଲଇ ଏ ବଉଳ ପାଟ ସୁନା
ଜଗ କାଢ଼ି ଦେଖ ଯେତେ । ୧୪ ।

ଅର୍ଥ—ଜଣେ ଯେ ପୁରୁଷ ପାଟବଣୀ ପାଖରେ ଯାଇ, ପାଟବଣୀକୁ କହିଲା—ତୋର ଏ ଯେଉଁ ବଉଳ ଅଛି, ତାହାର ମୂଲ୍ୟ କେତେ ନେବୁ ? ଏ କଥା ଶୁଣି ପାଟବଣୀ କହିଲା—ମୋର ଏ ବଉଳ ପାଟସୂତାରେ ତିଆରି ହୋଇଛି, ପୁଣି ଏଥିରେ ସୁନାଜରି ଲାଗିଛି । ଇଚ୍ଛା ହେଲେ ଜରି କାଢ଼ି, ସୁନା ଅଛି କି ନାହିଁ, ପରୀକ୍ଷା କରିନିଅ ।

ଅନ୍ୟାର୍ଥ—ସେ ଲମ୍ପଟ ପୁରୁଷ ପାଟବଣୀକି କହିଲା—(ଏ ବଉଳ) ଏବେ ତୋ ସଙ୍ଗରେ ରତି କଲେ, କେତେ ମୂଲ୍ୟ ଦେବାକୁ ପଡ଼ିବ କହ । ଏହା ଶୁଣି ପାଟବଣୀ କହିଲା—ଯେବେ ତୁମର ଏତେ ଇଚ୍ଛା, ତେବେ ସୁନା ଜରିଲଗା ପାଟ ମୋ ସକାଶେ ବାହାର କରି ଆଣ । ସେ ପାଟର ମୂଲ୍ୟ କେତେ ହେବ ତାହା ଦେଖି ସ୍ଥିର କରିନିଅ ।

ବଣିକ ବଧୂକୁ କେ ବୋଲଇ ଆଗେ
ଶୁଣ ନବ ରସବତୀ

ଭଲ କର କାଲ          କନକ ଗଉସ

ଦେବୁ ଦୁଇ ସୁର ରତ । ୧୫ ।

ଅର୍ଥ – ସେହି ପୁରୁଷ କଂସାରୀ ନାରୀ ପାଖରୁ ଯାଇ ବଣିଆ ସ୍ତ୍ରୀ ପାଖରେ ପହଞ୍ଚିଲା । ସେ ବଣିଆଣୀକୁ କହିଲା – ଆଗୋ ନୂଆ ରସିକଣୀ, ସୁବର୍ଣ୍ଣଦେହି ଗୋରୀ ! ମୋତେ କାଲି ଦୁଇସୁର ରତ ଗୋଟିଏ ଗୌରୀ ପ୍ରତିମା ଭଲ ସୁନାରେ ଗଢ଼ି ଦେବୁ ।

ଅନ୍ୟାର୍ଥ – ସେହି, ନାଗର ପୁରୁଷ ବଣିଆଣୀ ପାଖରେ ପହଞ୍ଚି ତାକୁ କହିଲ – ହେ ସୁବର୍ଣ୍ଣଦର୍ଣ୍ଣା ଗୋରୀ ! କାଲି ତୁମ ସଙ୍ଗରେ ଦୁଇ ସୁର ଥର ରତ ରଙ୍ଗ କରିବାକୁ ମୋର ଇଚ୍ଛା ହେଉଅଛି ।

ଦୁଇ ସୁର ରତ          ଥାଉ ହୋ ନାଗର

ରତିକର ମୂଲ୍ୟ ଦିଅ

ମୋହର କଟାକ୍ଷ          ସବୁଠାରୁ ବଡ଼

ତୁଳ ପକାଇଣ ନିଅ । ୧୬ ।

ଅର୍ଥ – ସେ ରସିକ ପୁରୁଷକୁ ବଣିଆଣୀ କହିଲା – ଦୁଇ ସୁର ରତ ସୁନା ତ ବେଶି ହୋଇ ଯାଉଛି, ଆଗେ ଗୋଟିଏ ରତିର ମୂଲ୍ୟ ଦିଅ । ତୁମ୍ଭେ ନିଜେ ଯାଚାଇ କରି ଦେଖ (କଟାକ୍ଷ) ଓଜନ କରିବାରେ ବଟକଣ ବା ମୁଦ୍ରା (ମୋହର) ବଜାରରେ ଥିବା କୌଣସିଠାରୁ କମ୍ ନୁହେଁ ବରଂ ବଡ଼ । ସେଥିରେ ସୁନାକୁ ତଉଲ ଦେଇ ଦେଖିକରି ନିଅ ।

ଅନ୍ୟାର୍ଥ – ସେ ରସିକ ପୁରୁଷକୁ ବଣିଆଣୀ କହିଲା – ହେ ରସିକ ! ଦୁଇସୁରି ରତିକ୍ରୀଡ଼ା କରିବା ତ ଦୂରର କଥା, ପ୍ରଥମେ ମୋ ସହିତରେ ଥରେ ରତି କଲେ ତୁମର ମନ ତୃପ୍ତ

ହେବ । ଆଉଥରେ ଇଚ୍ଛା କରିବନାହିଁ । ମୋର ଯେ ବୁଢ଼ାଣୀ ସବୁ ସ୍ତ୍ରୀଠାରୁ ଆକର୍ଷଣ ଶକ୍ତିରେ ଅଧିକ । ଯେବେ ତାହାଙ୍କୁ ଭୋଗ କରିବାର ଇଚ୍ଛାଥାଏ, ଆଗେ ଭଲା ଶେଯ ପକାଇ ମୋତେ ନେଇ ଭୋଗ କର । ସେତେବେଳେ ମୋ ରତିର କେତେ ମୂଲ୍ୟ, ତାହା ବଳେ ଜାଣିବ ।

ବୁଢ଼ୀଆ ବଧୂକୁ        କେ ବୋଲଇ ତୋର
ସାଚ ସେର କେତେ ମୂଲ୍ୟ
ସେ ବେଳେ ମୋ ସାଚ        ନମ୍ବର ବହନେ
ଏକା ହୁଏ ଭିନ୍ନ ଭିନ୍ନ । ୧୬ ।

ଅର୍ଥ — ତହୁଁ ସେ ବାଟପୁରୁଗ ବଣିଆଣୀ ପାଖରୁ ଯାଇଁ, ଗୁଡ଼ିଆଣୀ ପାଖରେ ପହଞ୍ଚି କହିଲା — ହେ ଗୁଡ଼ିଆଣି ! ତୋ ପସରାରେ ଯେଉଁ (ସାଚ)କନ୍ଦ ଅଛି,ସେ କନ୍ଦ ସେରକର ମୂଲ୍ୟ କେତେ । ଏହା ଶୁଣି ଗୁଡ଼ିଆଣୀ କହିଲା-ମୋର ଯେ ମୁଣ୍ଡା କନ୍ଦ ଦେଖା ହୋଇଛି, ତାର ମୂଲ୍ୟ ଯେତେ,ସେ ମୁଣ୍ଡାରୁ ଝଡ଼ିଯାଇ ଯାହା ପଡ଼ିଯାଉଛି ତାହାର ମଧ୍ୟ ମୂଲ୍ୟ ସେତିକି ।

ଅନ୍ୟାର୍ଥ — ସେହି ଜାରପୁରୁଷ ଗୁଡ଼ିଆଣୀ ପାଖକୁ ଯାଇ ତାକୁ କହିଲା, ତୋ (ସାଚ) ବିପରୀତ ରତିର ମୂଲ୍ୟ କେତେ ହେବ ? ତହୁଁ ଗୁଡ଼ିଆଣୀ କହିଲା — ମୁଁ ଦମ୍ଭକରି କହୁଛି, ଯେ କୌଣସି ପ୍ରକାର ରତିକ୍ରୀଡ଼ାର ସୁଖ ସମାନ । ବିପରୀତ ରତିର ମୂଲ୍ୟ ଅଲଗା ନୁହେଁ ।

ସାଚ ଦେଖିବାର        ଏମନ୍ତ ନୁହଇ
ବାସବପୁରେ ନଥିବ
କେମନ୍ତ ପଦାର୍ଥ        ଅଙ୍ଗୀକାର କଲେ
ତେବେ ନୟନେ ଦେଖିବ । ୮ ।

ଅର୍ଥ—ସେ ଗୁଡ଼ିଆଣୀ ସେ ନାଗର ପୁରୁଷକୁ କହିଲା—ମୋ ଦୋକାନରେ ଯେ କନ୍ଦମୁଣ୍ଡା ଅଛି, ତାହା ସାଧାରଣରେ ମିଳେ ନାହିଁ । ଏପରିକି ଇନ୍ଦ୍ର ଭୁବନ ସ୍ୱର୍ଗରେ ମଧ୍ୟ ନଥିବ । ତୁମେ ଯେବେ ସେ କନ୍ଦ ଟିକେ ନେବାକୁ ଚାହୁଁଥାଅ, ତେବେ ତାହା ଆଖିରେ ଦେଖ ଏବଂ ତା'ର ସୌନ୍ଦର୍ଯ୍ୟଗୁଣ ବିଷୟରେ ମନରେ ଭାବ ।

ଅନ୍ୟାର୍ଥ—ଗୁଡ଼ିଆଣୀ ସେ ନାଗର ପୁରୁଷକୁ ଉତ୍ତର ଦେଲା ତୁମେ ଯେ ବିପରୀତ ବନ୍ଧର ରତିକ୍ରୀଡ଼ା କଥା କହୁଛ, ଏପରି ଅବସ୍ଥାରେ ତାହା ଭୋଗ କରି ହୁଏ ନାହିଁ । ଯେଉଁ ସମୟରେ ମୋ ଦେହରେ ଲୁଗା ନ ଥିବ, ମୁଁ ପୂରା ଲଙ୍ଗଳା ହୋଇଯିବି, ସେତେବେଳେ ସେପରି ରତିକ୍ରୀଡ଼ା ଭୋଗ କରି ପାରିବ । ଜାଣିରଖ, ସେପରି ମୂଲ୍ୟବାନ ପଦାର୍ଥ ମୁଁ ନ ପାଇଲେ ତୁମେ ସେତେବେଳର ଅବସ୍ଥା ତୁମ ନିଜ ଆଖିରେ ଦେଖି ପାରିବ ନାହିଁ ।

ତୁମେ ଯେଉଁ ରସ ନେଉଛ ନାଗର
ସେ ରସ ମୋଠାରେ ନାହିଁ
ମୋ ରସ ସମସ୍ତ ରସରୁ ସରସ
ମୂଲ୍ୟ କିଁ ଦେଉଛ କହି । ୧୯ ।

ଅର୍ଥ—ସେ ଗୁଡ଼ିଆଣୀ ପୁଣି ସେ ପୁରୁଷକୁ କହିଲା—ହେ ନାଗର ! ତୁମେ ଯେଉଁ ରସ ଚାହୁଁ ଅଛ, ସେପରି ରସ ମୋ ପାଖରେ ନାହିଁ । ମୋ ପାଖରେ ଯେଉଁ ରସ ଅଛି, ସେ ରସ ସମସ୍ତ ରସଠାରୁ ଅଧିକ । ତାର ମୂଲ୍ୟ ଏବେ କହି ଦେଉନ୍ତୁ ।

ଅନ୍ୟାର୍ଥ—ସେହି ଗୁଡ଼ିଆଣୀ ସେ ନାଗର ପୁରୁଷକୁ କହିଲା-ତୁମେ ଯେଉଁ ବିପରୀତ ରତିକ୍ରୀଡ଼ା ଚାହୁଁଛ, ସେପରି

ସାଧାରଣ ବିପରୀତ ରତିକ୍ରୀଡ଼ା ମୋ ପାଖରେ ନାହିଁ । ମୋ ପାଖରେ ଯେଉଁ ବିପରୀତ ରତିକ୍ରୀଡ଼ାର ରସ ଅଛି, ତାହା ସମସ୍ତ ରମଣୀମାନଙ୍କର ବିପରୀତ ରତିକ୍ରୀଡ଼ାରୁ ଅଧିକ ଅଟେ । ତେଣୁ ଏବେ ତାର ମୂଲ୍ୟ କହୁଅଛି ଶୁଣ ।

ସେ ରସ ଆଗ ଟଙ୍କାଏ ହୋଇଥିଲା
ଏବେ ଅଧିକ ହୋଇବ
ରସ ଭୋଗ କଲ ଉପରୁ ରସିକ
ରହିଲା କଉଡ଼ି ଦେବ । ୨୦ ।

ଅର୍ଥ—ପୁଣି ସେହି ଗୁଡ଼ଆଣୀ କହିଲା—ସେ ସାତ ମୁଣ୍ଡା ଟଙ୍କାଟିଏ ହୋଉଥିଲା, ଏବେ ତାହା ବେଶୀ ହୋଇ ଯାଇଛି । ହେ ଗ୍ରାହକ ! ତୁମେ ସେ କଦଳି ନେଇ ଭୋଗ କଲା ପରେ, ସେହି କଦଳିର ଉପଯୁକ୍ତ ମୂଲ୍ୟ ଦେବ ।

ଅନ୍ୟାର୍ଥ—ସେ ଗୁଡ଼ଆଣୀ ସେ କାମୁକ ପୁରୁଷକୁ କହିଲା—ସେ ବିପରୀତ ରତି କ୍ରୀଡ଼ାରେ ଯେଉଁ ରସ ଅନୁଭୂତ ହୁଏ ତାହା ମୋଠାରେ ଅଧିକ ପରିମାଣରେ ପାଇବ । ଏହା ସଙ୍ଗେ ସମାନ ହେବାକୁ କୌଣସି ସ୍ତ୍ରୀ ଉପଯୁକ୍ତ ବୋଲି ମୁଁ ଭାବୁ-ନାହିଁ । ତେଣୁ ମୋର ଶେଷ କଥା, ପଣ୍ୟାରେ ଆଣିଥିଲେ କରି ପାରିବ, ନ ହେଲେ ସିଧା ଫେରିଯାଅ ।

ପାଞ୍ଚାଳ ନାୟକ କେ ବୋଲଇ ବଡ଼
ହୋଇଛି ରୁଚକ ଫଳ
ଏଡ଼େ ଏଡ଼େ ଘାଜ ପୂରରେ ତୁମ୍ଭର
ଅଛି କି କାହିଁରେ ମାର । ୨୧ ।

ସେ ବୋଲେ ଝମୂକ                    ବନରୁ ଏଥିରେ
ବହୁତ ରସ ହୁଅଇ
ଏବେ କାହିଁ ପାଇଁ                   ମାରସ ହୋଇବ
ନଅ ରସିକ ମୂନଇ । ୨୨ ।

ଅର୍ଥ-୨୧-୨୨ — ପାଞ୍ଚାଳ ନାରୀ — ପାଞ୍ଚାଳ ଦେଶୀୟ ସ୍ତ୍ରୀ । ପାଞ୍ଚାଳର ଆଧୁନିକ ନାମ ପଞ୍ଜାବ ।
ସେହି ବଜାରରେ ଜଣେ ପଞ୍ଜାବ ଦେଶୀୟା ସ୍ତ୍ରୀଲୋକ କେନ୍ଦଗୁଣ୍ଡ (କାଠର ତିଆରି) ଝୁମ୍ପଲେମ୍ବୁ ଫଳ ଆଣି ବସିଥିଲା । ଏହି ଶାଠପୁରୁଷ ତା ପାଖକୁ ଯାଇ କହିଲା— ହେ ସୁନ୍ଦରୀ ! ତୁମ୍ଭ ଟୋକେଇରେ ଯେଉଁ ଝୁମ୍ପଲେମ୍ବ ଅଛି ଏ ତ ବେଶ୍ ବଡ଼ ବଡ଼ ହୋଇଛି । ଏହା କ'ଣ ତୁମ୍ଭ ଘରେ ଅଛି ? ଏଥିରେ କ'ଣ ପାଣି ହୋଇଅଛି ? ଏ କଥା ଶୁଣି ସେ ସ୍ତ୍ରୀଲୋକ କହିଲା — ଶୁଣ, ଏ ଫଳ ଗୁଆ ପରି ହେଲା ବନ୍ଧୁ ଏଥିରେ ବହୁତ ରସ ଥାଏ । ଏବେ ତ ଏ ବଡ଼ ହେଲାଣି, ରସହରା ହୋଇଛି । ତୁମ୍ଭର ଯେବେ ନେବାର ଥାଏ, ତେବେ ମୂଲ କରି ନେଇଯାଅ ।

ଅନ୍ୟାର୍ଥ — ସେ ଶଠପୁରୁଷ ସେ ପଞ୍ଜାବୀ ସ୍ତ୍ରୀ ପାଖରେ ପହଞ୍ଚି କହିଲା — ତୁମ୍ଭର ଏ ବଡ଼ ବଡ଼ ଝୁମ୍ପଲେମ୍ବୁ ପରି ଯେଉଁ କୁଚ ଦେଖାଯାଉଛି, ଏଥିରେ କ'ଣ ରସ ଉତ୍ପନ୍ନ ହେଲାଣି ? ଏହା ପୁରୁଷଙ୍କର ଭୋଗର ଉପଯୁକ୍ତ ହେଲାଣି ? ଏ କଥା ଶୁଣି ସେ ସ୍ତ୍ରୀଲୋକ କହିଲା — ଏହା ଯେତେବେଳେ ଗୁଆ ପରି ହୋଇଥାଏ, ସେତେବେଳେ ଏଥିରେ କାମରସ ଥାଏ, ବର୍ତ୍ତମାନ ତ ବଡ଼ ହୋଇ ଝୁମ୍ପ ପରି ହେଲାଣି । ଏଥିରେ

କାମୁକମାନଙ୍କୁ ଉଦଳ ବଦଳ କରିବାକୁ ଶୃଙ୍ଗାର ରସ ପୂରି ରହିଛି । ଯେବେ ସ୍ୱର୍ଗ କରିବାର ଇଚ୍ଛା ଥାଏ, ତେବେ ମୂଲ କରି ନେଇପାରିବ, ଅର୍ଥାତ୍ ଉପଯୁକ୍ତ ଧନ ଦେଲେ କାମ-ରସ ଭୁଞ୍ଜି ପାରିବ ।

କରିବ କି ଗଳା ହାର ମୋହ ମଧୁ
ସୁମନ ସେ ଯେବେ ଅଛୁ
କହୁଛି ଯଥାର୍ଥ ଏମନ୍ତ ପଦାର୍ଥ
ଭୋଗି କି ପାରିବ ମୂର୍ଚ୍ଛି । ୨୩ ।

ଅର୍ଥ—ସେହି ନାରୀ ପୁଣି କହିଲା—ତୁମ୍ଭେ ତୁମ୍ଭର ଭଲ ମନରେ ଯଦି ଏ ପ୍ରକାର ଚିନ୍ତା କରିଥାଅ, ତେବେ ଗଳାରେ ଫୁଲ—ହାର ପକାଇ ସେହି ପୁଷ୍ପମଧୁ ସନ୍ତୋଷରେ ପାନ କରି ପାରିବ । ମୁଁ ପ୍ରକୃତରେ କହୁଛି, ଏପରି ପଦାର୍ଥ ତୁମ୍ଭେ ମୂର୍ଚ୍ଛି ପାରିବ କି ? ଅର୍ଥାତ୍ ଗ୍ରହଣ କରିପାରିବ ନାହିଁ ।

ଅନ୍ୟାର୍ଥ—ସେହି ନାରୀ ଉତ୍ତର ଦେଲା—ହେ ନାଗର । ଯେବେ ମୋ ଅଧର ମଧୁପାନ କରିବାକୁ ଇଚ୍ଛା କରିଛ, ମୋ ଓଷ୍ଠକୁ ଚୁମ୍ବନ କରି ସେଥିରୁ ଯେଉଁ ଅମୃତ ଝରେ, ତା ଖାଇବାକୁ ଇଚ୍ଛା କରିଛ, ତେବେ ମୋତେ ଆଲିଙ୍ଗନ କରି ଅର୍ଥାତ୍ କୋଳ କରି ବେକରେ ଫୁଲହାର ପରି ଲମ୍ବାଇ, ମୋର ବାହୁ ତୁମ୍ଭ ଗଳାରେ ଜଡ଼ାଇ ମୋ ଓଷ୍ଠର ଅମୃତ ପିଅ । ତୁମେ କାମ ମଦରେ ମୋହିତ ହୋଇ ଏହା କରି ପାରିବ ତ ?

ଆଗୋ ନାରୀ କେଳୀ ନାରୀ ନାରିକେଳେ
ପଡ଼ିଲଣି କଳାଶିରି

ସରିଗଲଣି ତ ସୁରସ ସମସ୍ତ
ଅଛୁ କ ନାହିଁ ଗୋ ପସ୍ତ । ୨୪ ।

ଅର୍ଥ—ସେହି ସାଟପୁରୁଷ ନଡ଼ିଆ ବଜାର କରୁଥିବା ସ୍ତ୍ରୀ ପାଖରେ ପହଞ୍ଚି ତାଙ୍କୁ କହିଲେ—ମୋର ପଇଡ଼ ଦରକାର; କିନ୍ତୁ ତୋ ନଡ଼ିଆ ଟୋକେଇରେ ଦେଖୁଛି, ଯେଉଁ ସବୁ ନଡ଼ିଆ ଅଛି, ସେଥିରେ କଳାଣିଆ ପଡ଼ିଗଲଣି । ସେ ସବୁ ପୋଖତ ହୋଇଗଲାଣି । ତେଣୁ ଏଥିରେ ଆଉ ପଇଡ଼ ପାଣିର ସ୍ୱାଦ କ ଗୁଣ ନଥିବ ।

ଅନ୍ୟ ଅର୍ଥ—ସେହି ସାଟପୁରୁଷ ନଡ଼ିଆ ବକୁଥିବା ସ୍ତ୍ରୀକୁ କହିଲା—ତୁମର ଯେ କୁଚ ନଡ଼ିଆ ପରି ହୋଇଛି ସେ ପାକଳ ହୋଇଗଲାଣି । ଜାଣିନ ନା, ଯେଉଁ ସ୍ତ୍ରୀ ବ୍ୟଭିଚାର କରେ ତାର ସ୍ତନରେ କଳାଣିଆ ଦେଖାଯାଏ । ତେଣୁ ଏହା କାହାର ଭୋଗ ହୋଇଛି କି ?

ସେ ବୋଲେ ନାଗର କେମନ୍ତ ଜାଣିଲ
ସୁରସ ଅଛି କି ନାହିଁ
ଜାଣିବ ଏଥି ପ- ସୁ ଥିବ ନଥିବ
କରରେ ଦେଖ ଝୁଲାଇ । ୨୫ ।

ଅର୍ଥ—ସାଟପୁରୁଷର ଏପରି କଥା ଶୁଣି ସେ ନଡ଼ିଆ ବଜାର ସ୍ତ୍ରୀ କହିଲା—ହେ ନାଗର, ମୋ ନଡ଼ିଆରେ ପାଣି ବା ରସ ଅଛି କି ନାହିଁ, ଏହା ତୁମ୍ଭ ହାତରେ ଧରି ବଜାଇ କରି ଦେଖି ନିଅ । ଝୁଥାରେ ବାଜେ କଥା କାହିଁକି କହୁଛ ?

ଅନ୍ୟାର୍ଥ—ସେ ନଡ଼ିଆ ବଜାର ସ୍ତ୍ରୀ କହିଲା—ମୋର ଯେଉଁ କୁଚ ନଡ଼ିଆ ଅଛି,ତାହା ତୁମ୍ଭ ହାତରେ ଧର ଭଲ କରି

ଆନ୍ଦୋଳନ କରି ଦେଖ—କୁଚକୁ ଧରଲକ୍ଷଣି କାମରସ
ଉଦ୍ରେକ ହେଉଛି କି ନାହିଁ ଦେଖ ।
କାଢ଼ୁଛ ବାମାକୁ କେ ବୋଲଇ ଚୋର
ବସନ ଫିଟାଇ ଦେଖା
ଭଲ ଥ ନ ଥିଲେ ଗଜ ମାପ କର
କଉଡ଼ି କରିବା ଲେଖା । ୨୭ ।

ଅର୍ଥ—ସେ ଶଠପୁରୁଷ କପଡ଼ିଆ ବକାଳ ପାଖରୁ ଯାଇ, କାପୋଡ଼ି ସ୍ତ୍ରୀର ଲୁଗା ଦୋକାନରେ ପହଞ୍ଚି ତାକୁ କହିଲା—ତୁମ ଗଣ୍ଠିରେ ଯେଉଁ ଲୁଗା ଅଛି, ତାହା ମୋତେ ଫିଟାଇ କରି ଦେଖାଅ । ଯେବେ ଭଲ ଥାନଲୁଗା ଥିବ, ଗଜରେ ମାପି କରି କେତେ ଦାମ୍ ହେବ ଠିକ୍ କରିବା ।

ଅନ୍ୟାର୍ଥ—ସେ ଶଠପୁରୁଷ କାପୋଡ଼ିଆଣୀ ପାଖରେ ପହଞ୍ଚି ତାକୁ କହିଲା—ତୁମ୍ଭଠାରେ ଯେଉଁ କାମ ଉଦ୍ରେକ ସ୍ଥାନ ଅଛି ତାହା ତୁମ୍ଭେ ସେ ଥାନରୁ ଲୁଗା କାଢ଼ି, ଫିଟାଇ ଦେଖାଅ । ମୁଁ ମୋର ଗଜଦାଗ ତାହା ମାପି ଦେଖିଲା ପରେ ସେଥି ପକାଣେ କେତେ ମୂଲ୍ୟ ହେବ ସ୍ଥିର କରିବା ।

ସେ ବୋଲଇ ମୋର ସୂତାରେ ଅମୂଲ୍ୟ
ହୋଇଛି କୁସୁମ ରଙ୍ଗ
ଝୀରେଦଶ ବେନି ଥାନ ଅଛି ଆରେ
ମୂଚନ୍ଦରେ କର ସଙ୍ଗ । ୨୮ ।

ଅର୍ଥ—ସେହି ଲମ୍ପଟପୁରୁଷର କଥା ଶୁଣି ସେ କାପୋଡ଼ିଆଣୀ କହିଲା—ମୋର ଲୁଗା ଦେଖି କଷ୍ଟ ଲଭ ନାହିଁ । ମୋର ଲୁଗାର ସୂତା ଯେଉଁସବୁ କୁସୁମ ରଙ୍ଗରେ ରଙ୍ଗ କରାଯାଇଛି ତାହା କପଡ଼ର ସୁନ୍ଦର ଦିଶୁଛି ଦେଖ । ଏହା ଆଗରୁ ହଲେ

କ୍ଷୀରେବଦସ୍ତ ପାଟଲୁଗା ଅଛି । ତାକୁ ତୁମେ ତୁମ ଦେହରେ ପିନ୍ଧନ୍ତୁ — ଶୋଭା ପାଇବ ।

ଅନ୍ୟାର୍ଥ — ସେ ଜାପେଡ଼ିଆଣୀ କହିଲ — ମୁଁ ଲୁଗ କାଢ଼ି ଖୋଲ କରି ଦେଖାଇ ଦେବା ଦ୍ୱାରା ମୋର ମର୍ମସ୍ଥାନ ଦେଖି ତୁମର କିଛି ଲଭ ହେବ ନାହିଁ । ମୋର ସ୍ତନ (ଛାତି)ର ଯୌବନ ଅବସ୍ଥା ଆରମ୍ଭରେ କପରି ପୁଷ୍ଟ ଉଦ୍‌ଗମ ହୋଇଛି ତାହା ଦେଖିଲେ ଓ ଉପଭୋଗ କଲେ ଏବଂ କ୍ଷୀରେବଦସ୍ତ ଅର୍ଥାତ୍ ଯୁଗଳ ସ୍ତନ ତୁମଦେହରେ ମିଶାଇଲେ ଆହୁରି ଭଲ ହେବ ।

ଗୋ ପାଳୀ ପସରା — ପାଶରେ ସେ ମିଳି
କହଇ ରହସ୍ୟ ବାଣୀ
ସତ କରି କହ — ଏ ତୋର ଦୁଧରେ
ମିଶିଅଛି କେତେ ପାଣି । ୨୮ ।

ଅର୍ଥ — ସେହି ଜାରପୁରୁଷ କାପେଡ଼ିଆଣୀ ପାଖରୁ ଯାଇ, ଗଉଡୁଣୀ ପାଖରେ ପହଞ୍ଚି କହିଲ — ତୁମେ ଯେ ଏ ଦୁଧ ଆଣିଛ, ଏହି ଦୁଧରେ କେତେ ପରିମାଣ ପାଣି ମିଶିଅଛି ଠିକ୍ କରି କୁହ ।

ଅନ୍ୟାର୍ଥ — ସେ ପୁରୁଷ ଗଉଡୁଣୀକି କହିଲ — ତୁମ୍ଭ ଦୁଧରେ (କୁଚରେ) କେତେ ପରିମାଣରେ ପାଣି (ହାତ) ଲଗିଅଛି ତାହା କୁହ ।

ସେ ବୋଲେ ନାଗର — ଦହି, ହୋଇବାକୁ
ବସିଅଛି ଦୁଧ ମୋର
ଆଗୁ ଜାତ ହେବ — ଏକା ପାଞ୍ଚ ଶର
କ୍ଷଣେ ମନ ସ୍ଥିର କର । ୧୯ ।

ଅର୍ଥ — ସେହି ଖଟପୁରୁଷର ଏପରି କଥା ଶୁଣି ସେ ଗଉଡୁଣୀ କହିଲା — ହେ ରସିକ ! ଦହି ହେବା ସକାଶେ ମୋର ଦୁଧ

ବସିଅଛୁ । ଏହି ଦହିରୁ ପାଞ୍ଚ ପ୍ରକାର ରସ ବାହାର ହେବ । ତୁମ୍ଭେ ମନକୁ ସ୍ଥିର କରି ଦେଖ ।

ଅନ୍ୟାର୍ଥ — ସେ ବୀଟପୁରୁଷକୁ ଗଉଡ଼ୁଣୀ କହିଲା ଯେ ମୋର ଦୁଧ ବା ସ୍ତନ ଅଛି, ସେ ଦହି ଅର୍ଥାତ୍ ମନ୍ଥା ପିବା ସକାଶେ ରହିଛି । ସେହି ମନ୍ଥନରୁ ପଞ୍ଚ ଶର ଯେ କାମବିକାର ଜାତ ହେବ । ସେ ବିକାର ଜାତ ହେଲେ ତୁମ୍ଭେ ଧୈର୍ଯ୍ୟ ଧରି ରହି ପାରିବ ନାହିଁ ।

କହେ ଉପଇନ୍ଦ୍ର - ଭଞ୍ଜ ବୀରବର

ଅଟନ୍ତି ସେହୁ ନାଗରୀ

ନାଗର ଦେଖି ପ୍ର — ତ୍ୟୁତ୍ତର ଦିଅନ୍ତି

ଧନ୍ୟ ଧନ୍ୟ ସେ ସ୍ତ୍ରୀଜୁସ୍ତ୍ରୀ । ୩୦ ।

ଅର୍ଥ — ବୀରବର ଉପେନ୍ଦ୍ର ଭଞ୍ଜ କହିଲେ — ଯେଉଁ ସ୍ତ୍ରୀଲୋକମାନେ ସେ ବୀଟପୁରୁଷକୁ ଏପରି ଉତ୍ତର ଦେବେ, ପ୍ରକୃତରେ ସେମାନେ ସବୁ ନାଗରୀ ମଧ୍ୟରେ ମଣି । କାରଣ ତାଙ୍କର ଚତୁର କଥାରେ ସେ ବୀଟପୁରୁଷ ପରାଜିତ ହୋଇଥିଲା । ତେଣୁ ସେ ସ୍ତ୍ରୀମାନଙ୍କୁ ଧନ୍ୟବାଦ ଦେବା ଉଚିତ । ଏହା କହି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏ 'ବଜାର ବୋଲି' ନାମକ ରହସ୍ୟ ପୂର୍ଣ୍ଣ ପଦ୍ୟଟି ଶେଷ କରିଅଛନ୍ତି ।

—o—

ଗଣନାୟକ ପ୍ରିଣ୍ଟର୍ସ, ଅଲିଶା ବଜାର, କଟକ-୨